# ଯୁଗେ ଯୁଗେ ଯୋଗାଯୋଗ





ଡକ୍ଟର ଜଗନ୍ନାଥ ମହାନ୍ତି

# ଯୁଗେଯୁଗେ ଯୋଗାଯୋଗ

( ୧ମ ଭାଗ )

ଲେଖକ :

ଡକ୍ଟର ଜଗନ୍ନାଥ ମହାନ୍ତି

ପ୍ରକାଶକ :

ସାହିତ୍ୟ ପ୍ରତିଷ୍ଠାନ

ଚଣ୍ଡିଛକ, କଟକ-୮

ପ୍ରକାଶକ :
ସାହିତ୍ୟ ପ୍ରତିଷ୍ଠାନ
ଚଣ୍ଡି ଛକ, କଟକ-୧

ପ୍ରଥମ ପ୍ରକାଶ : ୧୯୮୮

ମୁଦ୍ରଣ :
ଓଡ଼ିଶା ପ୍ରିଣ୍ଟିଂ ୱାର୍କସ୍
ମିଶନ୍ ରୋଡ଼, କଟକ-୧

ମୂଲ୍ୟ : ଛଅଟଙ୍କା ପନ୍ଦର ପଇସା ମାତ୍ର

# ଏଥିରେ ଅଛି





# ସୁଖ ଶାନ୍ତିର ସଂସାର ପାଇଁ
# ସରସ ଯୋଗାଯୋଗ

ଅନେକ ବର୍ଷ ଆଗେ ମଣିଷ ପଶୁପରି ଜଙ୍ଗଲରେ ଚଳୁଥିଲା । ପଶୁଠାରୁ ବି ସେ ଥିଲା ଅଧିକ ଅସହାୟ ! ପଶୁପରି ତାର ତ ଗୋଟିଆ ଶିଙ୍ଗ ନ ଥିଲା । ନ ଥିଲା ବି ତାର ମୁନିଆ ପଞ୍ଝା । ତାର ବିଷାକ୍ତ ଫଣା ନ ଥିଲା । ନଥିଲା ତାର ଗୋଟିଆ ଦାନ୍ତ । କୁଆଁକୁଆଁ ବର୍ଷା କି କଲିକା ଫଟା ଶୀତରୁ ରକ୍ଷା ପାଇବା ପାଇଁ ତା ଦେହରେ ବହଳ ଲୋମର ଚମଡ଼ା ବି ନଥିଲା ।

ସେ ସତେ ଥିଲା କେଡ଼େ ଅସହାୟ ! ତାର ସାହା-ଭରସା କିଛି ନ ଥିଲା । ଗଛରୁ ଫଳମୂଳ କି ପଶୁପକ୍ଷୀଙ୍କ କଞ୍ଚା ମାଂସ ଖାଇ ସେ ବଞ୍ଚୁଥିଲା । ହିଂସ୍ର, ପଶୁମାନେ ତାକୁ ଆକ୍ରମଣ କରୁଥିଲେ । ସେ ମଧ୍ୟ ପଶୁପକ୍ଷୀଙ୍କୁ ଶିକାର କରୁଥିଲେ । ବଞ୍ଚିବା ଥିଲା ତାର ଲଢ଼େଇ ବର୍ଷ ସାରା, ଦିନରାତି ।

ପ୍ରଥମେ ମଣିଷ ତାର ଖାଲି ହାତରେ ସବୁ କିଛି କରୁଥିଲା । ଫୁଙ୍ଗୁଳା ପାଦରେ ସବୁ ଆଡ଼େ ବୁଲୁଥିଲା । ସେ

ନିଜ ପାଇଁ ହାତ ହତିଆର ଗଢ଼ିଲା । ଫଳରେ ବହଳ ଜଙ୍ଗଲ ଭିତରେ ବୁଲିବାକୁ ସାହସ ପାଇଲା । କେତେବେଳେ



ପାହାଡ଼ ଗୁମ୍ଫା ଭିତରେ ରହିଲା । ବହଳିଆ ଗଛ ତଳେ ଶୋଇଲା । ପଶୁ ପରି ସେ ଦୁଃଖ, ସୁଖ, ଭୟ ଆଉ ଆନନ୍ଦରେ ନାନା ପ୍ରକାର ଶବ୍ଦ କରୁଥିଲା ।

ହେଲେ, ମଣିଷର ଗୋଟିଏ ଭଲ ପଦାର୍ଥ ଥିଲା । ସେଇଟା ଅନ୍ୟ ପଶୁପକ୍ଷୀଙ୍କଠାରୁ ତାର ଥିଲା ଅଧିକ । ତାହା ହେଲା ତାର ଅଦ୍ଭୁତ ମନ, ଏକ ଉନ୍ନତ ମସ୍ତିଷ୍କ । ତା ବଳରେ ସେ ପ୍ରଥମେ ଧୀର ମନ୍ଥର ଗତିରେ ଉନ୍ନତି କରି ଚାଲିଲା । ତା ପରେ ସେ ସବୁ ପଶୁପକ୍ଷୀଙ୍କୁ ପଛରେ ପକାଇ ଅଗେଇଲା । ତାର ପ୍ରଗତିର ପଟୁଆର ଖୁବ୍ ବେଗରେ ମାଡ଼ି ଚାଲିଲା ।

ସେ ତାର ପାଖ ଆଖକୁ ଦଖଲ କଲା । ନିଜର ଅକ୍ତିୟାରକୁ ଆଣିଲା । ପ୍ରକୃତିକୁ କ୍ରମେ ଜିଣିବାକୁ ଚେଷ୍ଟା

କଲା । ତାର ପରିବେଶକୁ ଆପଣାର କଲା । ସେ ଅନେକ ନୂଆ ଜିନିଷ ବାହାର କଲା । ଦିନକୁ ଦିନ ନୂଆ ନୂଆ ସ୍ଥାନ ସେ ଦେଖିଲା ।

ମଣିଷ ସେତେବେଳେ ଛୋଟ ଛୋଟ ଦଳରେ ରହିବା ଆରମ୍ଭ କଲା । ସମାଜ ଗଢ଼ିବାରେ ଲାଗିଲା । ନାନା ପ୍ରକାର ଶବ୍ଦ କରି ନିଜର ମନୋଭାବକୁ ପ୍ରକାଶ କଲା । ସେ ଦୁଃଖରେ କାନ୍ଦିଲା । ସୁଖରେ ହସିଲା । ବିପଦ ଆପଦ ଆପଦ ପଡ଼ିଲେ ପଡ଼ିଲେ ଜଙ୍ଗଲରେ ଚିତ୍କାର କଲା ।



ତାର କିଛି ଭାଷା ନଥିଲା । ହାତରେ ଠାରି, ମୁହଁରେ ଭଙ୍ଗୀ କରି ସେ ମନର ଭାବ ପ୍ରକାଶ କଲା । ସେଇ ସବୁ ଶବ୍ଦ ଠାରି, ମୁଖଭଙ୍ଗୀ କେତେକ ଲୋକଙ୍କ ମଧ୍ୟରେ ଗୋଟିଏ ଅର୍ଥ ବୁଝାଇଲା । ଗୋଟିଏ ଦଳର ମଣିଷ ନିଜ ନିଜ ଭିତରେ ସେ ସବୁ ସାହାଯ୍ୟରେ ଭାବରେ ଆଦାନ ପ୍ରଦାନ

କଲେ । ତାହା ସବୁ ହେଲା ମଣିଷର ଯୋଗାଯୋଗର ଗୋଟିଏ ଗୋଟିଏ ଭାବ ବିନିମୟର ଉପାୟ ।

ଏଇ ଯୋଗାଯୋଗ ହିଁ ହେଲା ସବୁ ଉନ୍ନତିର ମୂଳ-କାଠି । ଯୋଗାଯୋଗ ବିନା ସଭ୍ୟତା ନାହିଁ । ଯେଉଁଠି ସଭ୍ୟତା, ସେଇଠି ଉନ୍ନତ ଯୋଗାଯୋଗ । ଉଭୟେ ପରସ୍ପରର ସହାୟକ । ଗୋଟିଏ ଅନ୍ୟକୁ ଆଗେଇ ନିଏ ।

ମଣିଷର ସୁଖ ଦୁଃଖ, ଆଶା ଆକାଂକ୍ଷା, ଧ୍ୟାନ ଧାରଣା, ଚିନ୍ତା ଭାବନା ସବୁ ସେଇ ଯୋଗାଯୋଗରେ ପ୍ରକାଶ ପାଏ । ଯୁଦ୍ଧ ଶାନ୍ତି ସବୁଥିରେ ଯୋଗାଯୋଗ ଦରକାର । ଯୁଦ୍ଧରେ ସଫଳତା ପାଇବା ପାଇଁ ସେମିତି ଯୋଗାଯୋଗ ଆବଶ୍ୟକ । ଠିକ୍ ସମୟରେ, ଠିକ୍ ଜାଗାରେ, ପହଞ୍ଚିବା ହେଲା ବଡ଼ କଥା । ନହେଲେ ସବୁ ବିଭ୍ରାଟ, ସବୁ ଗୋଳମାଳ !

ସାଧାରଣରେ ଯୋଗାଯୋଗକୁ ଗୋଟିଏ ପ୍ରଣାଳୀ ବା ଗୋଟିଏ ପ୍ରକ୍ରିୟା କୁହାଯାଏ । ସେଇ ପ୍ରକ୍ରିୟାରେ ଚାରୋଟି ପ୍ରଧାନ ଅଂଶଥାଏ । ଗୋଟିଏ ହେଲା ଯେଉଁ ଲୋକ କିଛି ଭାବ ପ୍ରକାଶ କରେ । ଆଉ ଗୋଟିଏ ହେଲା ଯେଉଁ ଭାବ ବା ଖବର ପଠାଯାଏ । ଅନ୍ୟଟି ହେଲା ଯେଉଁ ଧାରା ବା ମାଧ୍ୟମରେ ତାହା ପଠାଯାଏ । ଶେଷଟି ହେଲା

ଯେଉଁ ଲୋକ ଏହି ଭାବ ବା ଖବର ପାଏ । ଯେ କୌଣସି ଯୋଗାଯୋଗରେ ଏମିତି ଚାରି ପ୍ରକାର ଉପାଦାନ ଥାଏ ।





ଯୋଗାଯୋଗର ସଫଳତା ପାଇଁ ଭାବ ଭାଷା, ଜ୍ଞାନ ଅନୁଭୂତି ଦରକାର । ତାହା ଯେତେ ସରଳ ଆଉ ସମାନ ହୁଏ, ଯୋଗାଯୋଗ ସେତେ ଆପଣାର ହୁଏ । ଭାବ ବିନିମୟ ବା କଥୋପ କଥନ ସଫଳ ହୁଏ । ଅନ୍ୟର ଉତ୍ତରକୁ ଚାହିଁ ଆମେ ଆମର ପ୍ରକାଶ ଭଙ୍ଗୀ ବା ଭାବକୁ ବଦଳାଇ ଥାଉଁ ।

ପ୍ରତ୍ୟେକେ ନିଜ ଦୃଷ୍ଟିକୋଣରୁ ସବୁ କଥା ବୁଝି-ଥାନ୍ତି । ଏଇ ବୁଝିବା ପୁଣି ନିଜର ସ୍ୱାସ୍ଥ୍ୟ, ରୁଚି, ଆଗ୍ରହ, ମନର ଅବସ୍ଥା ଉପରେ ନିର୍ଭର କରେ ।

ଭାଷା ଅଲଗା ହେଲେ, କଥା ସ୍ପଷ୍ଟ ନ ହେଲେ, ଭାବ ବୁଝି ନହେଲେ, ଭଙ୍ଗୀକୁ ଧରି ନ ପାରିଲେ ଯୋଗା-ଯୋଗରେ ଗୋଳମାଳ ହୁଏ । ଗୋଟିଏ କଥାର ଅର୍ଥ ଅନ୍ୟ ପ୍ରକାରେ ବୁଝାଯାଏ । ଜଣଙ୍କର ଗୋଟିଏ ଭାବକୁ ଅନ୍ୟ ଜଣେ ଅନ୍ୟ ପ୍ରକାରେ ବୁଝେ । ଦୁନିଆରେ ଏଥିଯୋଗୁଁ ବହୁ ଭୁଲ ବୁଝାମଣା ହୁଏ । ଏଥିପାଇଁ କେତେ ଗଣ୍ଡଗୋଳ, ମନୋମାଳିନ୍ୟ ଆଉ ହିଂସାକାଣ୍ଡ ବି ଘଟେ ।

ଶ୍ରୀ ରାମକୃଷ୍ଣ ପରମହଂସ ଅନେକ ସରସ ଗଳ୍ପ ଆଉ ନିତିଦିନିଆ ଘଟଣାରୁ ଉଦାହରଣ ଦେଇ ଧର୍ମ ଶିକ୍ଷା ଦେଇଥିଲେ । ଫଳରେ ତାଙ୍କ କଥା ସବୁରି ମନକୁ ଛୁଉଁଥିଲା । ସେ କହୁଥିଲେ ଯେ ଭଗବାନଙ୍କୁ ଆମେ ଦେଖି ପାରିବା ଆଉ ତାଙ୍କ ସାଥିରେ କଥାବାର୍ତ୍ତା କରିପାରିବା ।

ସବୁ ଧର୍ମ ସମାନ । ଏହା ନାନା ବାଟରେ ଯାଇ ଗୋଟିଏ ସ୍ଥାନରେ ପହଞ୍ଚିବା ପରି । କିନ୍ତୁ ସାଧାରଣ ମଣିଷ ଏହା ବୁଝି ନ ପାରି ନିଜ ନିଜ ଭିତରେ କଳି ତକରାଳ କରେ । ଶେଷରେ ମାରହାଣ ପର୍ଯ୍ୟନ୍ତ କଥାଯାଏ । ଗୋଟିଏ ଗୋଟିଏ ଦିଗରୁ ଆମେ ଆମ ଧର୍ମକୁ ବୁଝୁ ଫଳରେ ଆମ ବୁଝିବା ଏକପାଖିଆ ହୋଇଥାଏ । ଆମେ ଯାହା କହୁ

ବେଦର ସାର ଭକ୍ତି । ଆମେ ଯାହା ବୁଝୁ ତାହା ପୂରା ଠିକ୍ ବୋଲି ଧରିନେଉ ।

ରାମକୃଷ୍ଣ ଏଇ କଥାକୁ ଗୋଟିଏ ଗପ ଛଳରେ ପ୍ରକାଶ କରିଛନ୍ତି । ଥରେ ପାଞ୍ଚୋଟି ଅନ୍ଧ ରାସ୍ତାରେ ଯାଉଥିଲେ । ସେମାନେ ଜାଣିବାକୁ ପାଇଲେ ଯେ ରାଜାଙ୍କର ପାଟହାତୀ ଆସିଛି । ସମସ୍ତେ କହୁଛନ୍ତି ତାହା ବଡ଼ ଜୀବଟାଏ । ଦେଖିବାକୁ ସେ ହାତୀଟା କିପରି ?



ଜଣେ ଅନ୍ଧ ସାଙ୍ଗମାନଙ୍କୁ କହିଲା ଚାଲିଯିବା, ହାତୀଟା କିପରି ଜାଣିବା । ସମସ୍ତେ ସାଥିହୋଇ ହାତୀ ପାଖକୁ ଗଲେ । ଜଣେ ହାତୀର ଗୋଡ଼କୁ ଧରି କହିଲେ—ହାତୀଟା ଖମ୍ବ ପରି । ଜଣେ ତାର କାନକୁ ଧରି କହିଲା—ନାଁ, ହାତୀଟା କୁଲା ପରି । ଆଉ ଜଣେ ହାତୀର ଶୁଣ୍ଢକୁ ଧରି କହିଲା—ଚୁପ, ହାତୀଟା ଗୋଟିଏ ସାପପରି ।

ଆଉଜଣେ ତାର ବଡ଼ ଦାନ୍ତକୁ ଗୋଟିଏ ଧରି କହିଲା ଭେକ୍, ହାତୀଟା ଗୋଟିଏ ତୀର ବା ବର୍ଚ୍ଛା ପରି । ଶେଷ ଜଣଙ୍କ

ତା ଲାଙ୍ଗୁଡ଼କୁ ଛୁଇଁ କହିଲା, ଛିଃ ଛିଃ ହାତୀଟା ତ ଗୋଟିଏ ଦଉଡ଼ି ପରି ।

ଏହିପରି ହେଲା କେତେ ବଡ଼, କେତେ ସୁନ୍ଦର ହାତୀର ରୂପ ! ଗୋଟିଏ ଜିନିଷକୁ ଭଲ କରି ବୁଝି ନ ପାରିଲେ, ଦେଖି ନ ପାରିଲେ, ତାର ରୂପ, ଗୁଣ ବା ଅବସ୍ଥା ସମ୍ପର୍କରେ ଅନୁମାନ କରୁ । ବେଳେ ବେଳେ ଏହା କିମ୍ଭୂତ କିମାକାର ରୂପ ନେଇଥାଏ । ଠିକ୍ ବାତଣ୍ଡା ଲାଗେ । ସୀମା ଟପିଲେ ମୁଣ୍ଡ ଫାଟେ । ଘରଦ୍ୱାର ପୋଡ଼ାଯାଏ । ସୁନାର ସଂସାର ଚୂନା ହୁଏ ।

ଏଇଠି ରହିଲା ଯୋଗାଯୋଗର ଗୁରୁତ୍ୱ । ଗୋଟିଏ କଥାକୁ ବୁଝି ଠିକ୍ କରି ବୁଝାଇବା ନୂଆ କଥା । ଠିକ୍ ଭାବରେ ନିଜ ମନର ଭାବକୁ ପ୍ରକାଶ କରିବା ଦରକାର । ଠିକ୍ ବୁଝାମଣାର ପହିଲି ପାହାଚ ।

ଭୁଲ ଯୋଗାଯୋଗ ଭୁଲ ବୁଝାମଣା ସୃଷ୍ଟି କରେ । ତେଣୁ କୁହାଯାଏ, ଭଲ ଯୋଗାଯୋଗ ଭଲ ବୁଝାମଣା ପାଇଁ ନିତାନ୍ତ ଦରକାର । ଭଲ ବୁଝାମଣା ସୁଖଶାନ୍ତିର ସଂସାର ପାଇଁ ଖୁବ୍ ଆବଶ୍ୟକ ।



# ପୁରାକାଳରେ ଯୋଗାଯୋଗର ନାନା ଉପାୟ

ଦୂର ଅତୀତ କଥା । ସେତେବେଳେ ମଣିଷ ଆଉ ପଶୁ ଏକାକାର ଥିଲେ । ଗୋଟିଏ ଦଳର ଲୋକେ ନିର୍ଦ୍ଦିଷ୍ଟ



ଶବ୍ଦ କରି ତାର ଏକା ଅର୍ଥ ବୁଝୁଥିଲେ । ଏହି ସବୁ ଶବ୍ଦର କ୍ରମାଗତ ବ୍ୟବହାର ଫଳରେ ସେ ସବୁ ନିର୍ଦ୍ଦିଷ୍ଟ ଅର୍ଥ

ବୁଝାଇଲି । ତାପରେ ହାତ ଠାର ଆଉ ମୁଖ ଭଙ୍ଗୀର ମଧ୍ୟ ବ୍ୟବହାର ହେଲା । ତାହା ସବୁ ନିର୍ଦ୍ଦିଷ୍ଟ ଅର୍ଥକୁ ପ୍ରକାଶ କଲା ।

ଏବେ ମଧ୍ୟ ଆମେରିକାର ଆଦିବାସୀ ଲୋହିତ ଭାରତୀୟ ମାନେ ହାତ ହଲାଇ ନିଜର ମନୋଭାବ ପ୍ରକାଶ କରିଥାନ୍ତି । କାଲ ଆଉ ବଧିର ଲୋକମାନେ ଠାରିଠାରି କରି ନିଜ ନିଜ ଭିତରେ କଥା ବାର୍ତ୍ତା ହୁଅନ୍ତି । ମଧ୍ୟ ଆଫ୍ରିକାରେ ଲୋକମାନେ ଢୋଲକି ପରି ଗୋଟିଏ ବାଜାବଜାଇ ନିର୍ଦ୍ଦିଷ୍ଟ ଭାବ ପ୍ରକାଶ କରନ୍ତି । ଭାରତରେ ମଧ୍ୟ ବହୁ ଦିନ ଧରି ନାଗରା ବଜାଇ ଲୋକମାନଙ୍କୁ ଖବର ଜଣାଇ ଦିଆ ଯାଉ ଥିଲା ।



ମଇଁଷି ଶିଙ୍ଗରୁ ଆଗେ ଶିଙ୍ଗା ନାମକ ଏକ ବାଜା ତିଆରି ହେଉଥିଲା । ତାକୁ ବଜାଇ ଖବର ଦିଆନିଆ

ହେଉଥିଲା । ଆଦମ ଅଧିବସୀମାନେ ଏଇ ଶିଙ୍ଗା ବଜାଇ ନିଜ ନିଜ ଭିତରେ ଯୋଗାଯୋଗ କରୁଥିଲେ । ଆଗେ ବଲ୍‌ତରେ ଶିକାରୀମାନେ ଶିଙ୍ଗା ବଜାଇ ନିଜ ନିଜ ଭିତରେ ଖବ ବନିମୟ କରୁଥିଲେ ।



ଯୁଦ୍ଧ ବେଳେ ମଧ୍ୟ ବଭିନ୍ନ ଦେଶର ଲୋକେ ଶିଙ୍ଗା ବଜାଉ ଥିଲେ । ଓଡ଼ିଶାରେ ଏକ କାତର ଲୋକ ଶିଙ୍ଗାକୁ ଏକ ବାଜା ରୂପେ ବ୍ୟବହାର କରୁଥିଲେ । ଶିଙ୍ଗା ବଜାଇ ସେମାନେ ନାଚୁଥିଲେ । ଗୀତ ଗାଉଥିଲେ ।

ମଧ୍ୟ ଯୁଗରେ ବଭିନ୍ନ ଅଫିସରେ ଆଉ ଜାହାଜରେ ଶିଙ୍ଗା ବା କାହାଳୀ ପରି ଏକ ବାଜା ୫ଙ୍ଗା ହୋଇ ରହୁ-

ଥିଲା । ଯେତେବେଳେ ଦରକାର ପଡ଼ୁଥିଲା, ତାହା ବ୍ୟବହାର କରାଯାଉ ଥିଲା । ସାଧାରଣତଃ ଜରୁରୀ ଅବସ୍ଥାରେ ଏହାକୁ ବଜାଇ ସମସ୍ତଙ୍କୁ ସତର୍କ କରାଇ ଦିଆ-ଯାଉଥିଲା । ପରେ ଖେଳ ପଡ଼ିଆରେ ଆଉ ପୋଲିସ୍‌ମାନେ ମଧ୍ୟ ଏହିପରି ବାଜା ବ୍ୟବହାର କଲେ ।



ଆଗେ ନିଆଁ ଓ ଧୂଆଁକୁ ଜରୁରୀ ସମ୍ବାଦ ଦୂରକୁ ପଠାଇବା ପାଇଁ ବବ୍ୟହାର କରାଯାଉଥିଲା । ଯେତେ-

ବେଳେ ଶତ୍ରୁ ଦେଶକୁ ଆକ୍ରମଣ କରୁଥିଲେ କିମ୍ବା ଜରୁରୀ ଘଟଣା ଘଟୁଥିଲା, ନିର୍ଦ୍ଦିଷ୍ଟ ଏକ ପାହାଡ଼ ଉପରେ ନିଆଁ ଜାଳି ଚଉଦିଗରେ ଲୋକମାନଙ୍କୁ ଜଣାଇ ଦିଆଯାଉଥିଲା। ଆମେରିକାର ଅଧିବାସୀ ଲୋହିତ ଭାରତୀୟମାନେ ଧୂଆଁକୁ ଜରୁରୀ ଯୋଗାଯୋଗରେ ବ୍ୟବହାର କରୁଥିଲେ।

ଖବର ଅନ୍ତର ନେବା ଆଣିବା ପାଇଁ ବଡ଼ ଅସୁବିଧା ଥିଲା। ବଣ ପାହାଡ଼, ନଦୀନାଳ, ସମୁଦ୍ର ଆଦି ପ୍ରାକୃତିକ ବାଧାବିଘ୍ନ। ଆଜିକାଲି ପରି ଯନ୍ତ୍ରପାତି ନ ଥିଲା। ଯୁଦ୍ଧ ସମୟରେ ଲୋକଙ୍କୁ ଏକାଠି କରିବାର ଦରକାର। ସାବଧାନ କରାଇବା ଉଚିତ। ବ୍ୟବସାୟ ବାଣିଜ୍ୟପାଇଁ ମଧ୍ୟ ଦୂର ଦେଶକୁ ଖବର ଅନ୍ତର ପଠାଇବା ଦରକାର। ଦୈବୀ ଦୁର୍ଘଟଣା ବେଳେ ଅନ୍ୟର ସାହାଯ୍ୟପାଇଁ ଜରୁରୀ ଖବର ପଠାଇବା ଲୋଡ଼ା। ତେଣୁ ଯୁଦ୍ଧ, ଶାନ୍ତି ଓ ଦୁର୍ଘଟଣା ବେଳେ ଯୋଗା ଯୋଗର ଜରୁରୀ ଆବଶ୍ୟକତା ରହିଥାଏ।

ଅଢ଼େଇ ହଜାର ବର୍ଷ ତଳର କଥା। ଗ୍ରୀସ୍ ଦେଶରେ ସ୍ପାର୍ଟା ଓ ଏଥେନ୍ସ ନାମକ ଦୁଇଟି ରାଜ୍ୟ। ପାରସ୍ୟର ରାଜା ଏଥେନ୍ସକୁ ଚଢ଼ାଉ କଲେ। ସ୍ପାର୍ଟାର ସାହାଯ୍ୟ ନିତାନ୍ତ ଦରକାର ପଡ଼ିଲା। ମାତ୍ର ୨୫୦ କିଲୋମିଟର ଦୂର। ସେତେବେଳେ ଏଇ ଦୂରତା କମ୍ ନଥିଲା। ଫେଡ଼ ପାଇଡ୍ ନାମକ ଜଣେ ଯୁବକ ଧାଇଁ ଧାଇଁ ଏଇ ଖବର ଦେଲେ। ଯୁଗ ଯୁଗକୁ ଏହି ଗ୍ରୀକ୍ ବୀରର ନାଁ ରହିଲା।

ଗ୍ରୀସ୍‌ର ଆଉଜଣେ ବୀର । ମାରାଥାନ ଠାରେ ଗ୍ରୀକ୍‌-ମାନେ ଗୋଟିଏ ଯୁଦ୍ଧରେ ଜିଣିଲେ । ଏଇ ଖୁସିର ଖବର ଦେଶବାସୀଙ୍କୁ ଶୀଘ୍ର ଜଣାଇବା ଦରକାର । ସେଇ ବୀର ଧାଇଁ ଧାଇଁ ଯାଇଥିଲେ । ରାଜଧାନୀ ଅକ୍ରୋପଲିସ୍ ଠାରେ ପହଞ୍ଚି ଏଇ ଖବର ସେ ଦେଲେ । ମାତ୍ର ଅତି ଜୋରରେ ଲମ୍ବାବାଟ ଧାଇଁ ଥିବାରୁ ସେ ବେହୋସ ହୋଇ ପଡ଼ି-



ଥିଲେ । ତା ପରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ଏବେ ଏମିତି ଲମ୍ବା ଦୌଡ଼କୁ "ମାରାଥନରେସ୍‌" କୁହାଯାଏ ।

ପାରସ୍ୟ (ଆଜିର ଇରାନ୍) ଦେଶରେ ଆଗେ ଯେଉଁ ଲୋକ ଜୋରରେ ଶବ୍ଦ କରି ପାରୁଥିଲା, ତାକୁ ଖବର

ଜଣାଇବା ପାଇଁ ବଛା ଯାଉଥିଲା । କେତେ ଗୁଡ଼ିଏ ଲୋକଙ୍କୁ ଏଥିପାଇଁ ଠିକ୍ କରାଯାଉଥିଲା । ଜଣକ ପରେ ଜଣେ ପ୍ରାୟ ଏକ କିଲୋମିଟର ଦୂରତାରେ ରହୁଥିଲେ । ସେମାନେ ଉଚ୍ଚ ସ୍ଥାନରେ ଠିଆ ହୋଇ ରହୁଥିଲେ । ଜଣେ ପାଟିର ଦୁଇ ପଟେ ହାତ ପାପୁଲିକୁ ଧରି ଜୋରରେ ଗୋଟିଏ ଖବର ଦେଉଥିଲା । ତା ପରେ ଆଉ ଜଣେ ସେମିତି ପାଟି ପାଖରେ ହାତରଖି କହୁଥିଲା । ଏମିତି ଦେଶସାରା ଏଇ ଖବର ପ୍ରଘଟ ହୋଇ ଯାଉଥିଲା ।



ମହାବୀର ଆଲେକ୍‌ଜାଣ୍ଡର ସେମିତି ତାଙ୍କ ସୈନ୍ୟ ବାହିନୀ ପାଇଁ ଗୋଟିଏ ବଡ଼ କାହାଳୀ ରଖିଥିଲେ । ବହୁ

ଦୂରରୁ ତାଙ୍କ ସୈନ୍ୟଙ୍କୁ ସେ ଏହା ଦ୍ୱାରା ଜଣାଇବାର ବ୍ୟବସ୍ଥା କରୁଥିଲେ । ସମ୍ଭବତଃ ଶିଙ୍ଗାରୁ ଏଇ କାହାଳୀ ନାମଟି ଆସିଛି । ଇଂରେଜିରେ କାହାଳୀକୁ 'ହର୍ଣ୍ଣ' କୁହାଯାଏ । ହର୍ଣ୍ଣ ଅର୍ଥ ମଧ୍ୟ ଶିଙ୍ଗା । ଆଗେ ଶିଙ୍ଗରୁ କାହାଳୀ ତିଆରି ହୋଇ କେତେ ଲୋକପ୍ରିୟ ଥିଲା, ଏଥିରୁ ଜଣାପଡ଼େ । ଏଇ କାହାଳୀ ପୁଣି ହେଲା ପରବର୍ତ୍ତୀ ମେଗାଫୋନ ବା ମାଇକ୍ରୋଫୋନର ଆଦିମ ଅବସ୍ଥା ।



ଆଗକାଳରେ ଯୋଗାଯୋଗର ବିଳମ୍ବ ଯୋଗୁଁ କି ଅସୁବିଧା ଘଟୁଥିଲା, ତାହା ଗୋଟିଏ ଘଟଣାରୁ ଜଣାପଡ଼େ । ପ୍ରାୟ ସାତ ଶହ ବର୍ଷ ତଳର କଥା । ପାରସ୍ୟର ରାଜା ଥିଲେ ଅର୍ଘୁନ ଖାଁ । ସେ ଚୀନର ରାଜ କନ୍ୟାଙ୍କୁ ବାହାହେବାକୁ ମନ କଲେ । ସେଥିପାଇଁ ସେ ଚୀନକୁ ଦୂତ ପଠାଇଲେ । ସେତେବେଳେ ଚୀନରେ ଜଣେ ଖୁବ୍ ଜଣାଶୁଣା ରାଜା ଥିଲେ । ତାଙ୍କ ନାଁ କୁବ୍ଲାଇ ଖାଁ । ପାରସ୍ୟର ଦୂତଙ୍କୁ

ଯେତେ ଶୀଘ୍ର ଗଲେ ବି ଚୀନରେ ପହଞ୍ଚିବା ପାଇଁ ଦୁଇ ବର୍ଷ ଲାଗିଗଲା ।

ଏହି ସମୟ ଭିତରେ ପାରସ୍ୟର ରାଜା ଅର୍ଘୁନ ଖାଁ. ମରିଗଲେ । ଏହି ଖବର କିନ୍ତୁ ଚୀନରେ ପହଞ୍ଚିବା ପାଇଁ ତ ପୁଣି ଦୁଇବର୍ଷ ଦରକାର । ତେଣୁ ଏହି ଖବର ଚୀନରେ ପହଞ୍ଚିବା ପୂର୍ବରୁ ସେଠାର ରାଜକନ୍ୟା ଓ ତାଙ୍କ ସହିତ ଦୁଇ ହଜାର ଲୋକ ୧୪ଟି ଜାହାଜରେ ପାରସ୍ୟ



ଅଭିମୁଖେ ଯାତ୍ରା କରିଥିଲେ । ସମୁଦ୍ରରେ ଦୀର୍ଘ ଯାତ୍ରା କରିବା ମଧ୍ୟରେ ନାନା ବିପଦ ଆପଦରେ ପଡ଼ି ୬୦୦ ଲୋକ

ମରିଥିଲେ । ପ୍ରାୟ ଦୁଇ ବର୍ଷ ପରେ ଚୀନ ରାଜକନ୍ୟା ତାଙ୍କ ଦଳଙ୍କ ସହିତ ପାରସ୍ୟରେ ପହଁଞ୍ଚିଲେ ।

କିନ୍ତୁ ହାୟ ! ସେତେବେଳକୁ ତ ଅର୍ଘୁନ ଖାଁ । ଆଉ ନାହାନ୍ତି । ଚୀନ ରାଜକନ୍ୟାଙ୍କ କଥା କ'ଣ ହେବ ? ସେତେବେଳକୁ ଅର୍ଘୁନ ଖାଁଙ୍କ ପୁଅ ରାଜ ଗାଦିରେ ବସିଲେଣି । ତେଣୁ ଶେଷରେ ସେ ଚୀନର ରାଜକନ୍ୟାଙ୍କୁ ବାହାହେଲେ ।



ମଣିଷ ଶୀଘ୍ର ଯୋଗାଯୋଗ କରିବାକୁ ପଶୁ ପକ୍ଷୀମାନଙ୍କୁ ବ୍ୟବହାର କଲା । ଆଗେ ପାରସ୍ୟରେ ଘୋଡ଼ା ପିଠିରେ ବସି ଦୂତମାନେ ଖବର ନେବା ଆଣିବା କରୁଥିଲେ ।

ପରେ ଡ଼ାକ ନବା ଆଣିବା ପାଇଁ ଘୋଡ଼ା ସବାର ମାନେ ନିଯୁକ୍ତ ହେଲେ ।

ମଧ୍ୟ ଯୁଗରେ ପଶ୍ଚିମ ଏସିଆର ବଭିନ୍ନ ଦେଶରେ ପାରାମାନଙ୍କୁ ଖବର ନେବା ଆଣିବା ପାଇଁ ବ୍ୟବହାର କରା ଯାଉଥିଲା । ପରେ ୟୁରୋପରେ ପାରାମାନଙ୍କର ବ୍ୟବହାର କରାଯାଇଥିଲା ।



୧୮୪୦ ମସହାରେ ଲଣ୍ଡନ ଓ ପାରସ୍ ମଧ୍ୟରେ ପାରାମାନେ ଖବର ନେବା ଆଣିବା କରୁଥିଲେ । ପ୍ରଥମ ବିଶ୍ୱ ଯୁଦ୍ଧ ଆରମ୍ଭରୁ ଫରାସୀ ସରକାର ବଲାତ ସୈନ୍ୟ ବିଭାଗକୁ ୧୫ଟି ପାରା ଦେଇଥିଲେ । ସେଇ ପାରା ଗୁଡ଼ିକ ଖବର ନେବା ଆଣିବା କରିବାରେ ବ୍ୟବହୃତ ହୋଇ-ଥିଲେ ।

ଯୁଦ୍ଧ ସମୟରେ ଏହି କାମରେ ପ୍ରାୟ ୨୦ ହଜାର ପାର୍‌ ଲଗିଥିଲେ । ସମସ୍ତ ପ୍ରକାର ଯୋଗାଯୋଗ ଅଚଳ ହେଲେ ପାର୍‌ମାନଙ୍କର କାର୍ଯ୍ୟ ଏହି କ୍ଷେତ୍ରରେ ଆଶ୍ଚର୍ଯ୍ୟ ଜନକ ହୋଇଥାଏ । ସେମାନେ ଅତି ବିଶ୍ୱସ୍ତ ଭାବରେ ଏହି କାର୍ଯ୍ୟ କରିଥାନ୍ତି ।

ଆଜିକାଲି ପୃଥିବୀର ସମସ୍ତ ଦେଶରେ ପାର୍‌ଦଳ ପୋଲିସ୍‌ ଓ ଡାକ ବିଭାଗ କାର୍ଯ୍ୟ କରୁଛନ୍ତି । ଆମ ଓଡ଼ିଶାରେ ବି ପ୍ରାୟ ଏକ ହଜାର ପାର୍‌ ଏବେ ପୋଲିସ୍‌ ବିଭାଗରେ କାର୍ଯ୍ୟ କରୁଛନ୍ତି । ବତାସ ଆଉ ବଢ଼ି ସମୟରେ ସେମାନେ ଖୁବ୍‌ ସହାୟକ ହୁଅନ୍ତି ଏହି ଖବର ଦେବା ନେବାରେ । ସେହି ପାର୍‌ ମାନଙ୍କୁ ତାଲିମ ଦିଆଯାଇଛି । ଧନ୍ୟ ମଣିଷର ବୁଦ୍ଧି !



# ଯୋଗାଯୋଗରେ ରେଖା ଓ ଚନ୍ଦ

୧୯୪୦ ମସିହା । ଫ୍ରାନସର ଘନଜଙ୍ଗଲ । ପାଞ୍ଚଜଣ ପିଲା ସେଇ ଜଙ୍ଗଲ ଭିତରେ ବୁଲୁଥିଲେ । ସେମାନଙ୍କ ସାଥିରେ ଥିଲା ପୋଷା କୁକୁର "ରୋବଟ୍" । କୁକୁରଟି କେଉଁଠି ବାଟବଣା ହୋଇଗଲା । ସାଙ୍ଗମାନେ ଖୋଜି ଖୋଜି ତାକୁ ପାଇଲେ ନାହିଁ । ଶେଷରେ ସେମାନେ ଗୋଟିଏ ଗାତ ଭିତରୁ କୁକୁରଟିର "ଭୋ ଭୋ" ଶବ୍ଦ ଶୁଣିଲେ । ସେମାନେ ଭାବିଲେ କୁକୁରଟି ସେଇ ଗାତ ଭିତରେ ପଡ଼ି ଯାଇଛି । ସେ ତା ଭିତରୁ ଉଠି ପାରୁ ନାହିଁ ।

ଏହି ଗାତଟି ଭାରି ଅଣଓସାରିଆ ଆଉ ଗଭୀର । ତାହା ବହୁ ଘାସ ଲତାରେ ଘୋଡ଼େଇ ହୋଇ ପଡ଼ିଥିଲା । ପିଲାମାନେ ସେମାନଙ୍କ ହାତ ଓ ବାଡ଼ି ସାହାଯ୍ୟରେ ସେଇ ଗାତକୁ ଆହୁରି ଓସାରିଆ କରିଦେଲେ । ଛୁରୀ ଧରି ଗଛ-ଲତାମାନ କାଟି ସଫା କରିଦେଲେ ।

ଗାତଟା ଟିକିଏ ବଡ଼ ଓ ସଫା ହୋଇଗଲା । ସବୁଠୁ ବଡ଼ ପିଲା ରବିଦତ୍ତ ଆଗେଇ ତା ଭିତରକୁ ପଶିଲା । କିନ୍ତୁ ଶେଷରେ ସେ ଗାତ ଭିତରକୁ ଖସିପଡ଼ିଲା । ଗଭୀର ଗାତ ତଳେ ପଡ଼ି ଦେଖିଲା ଚଉଦିଗ ଘନ ଅନ୍ଧାର ।

ସେ ତା ପକେଟରୁ ଦିଆସିଲି ବାହାର କରି ମାରିଲା । ଦେଖିଲା ସେ ଗୋଟିଏ ବଡ ଗୁମ୍ଫା ଭିତରେ ପହଞ୍ଚିଛି । ରୋବେଟ୍ ତା ଭିତରେ ଠିଆ ହୋଇଛି । ଲାଙ୍ଗୁଳ ହଲାଇ ତା ମନର ଆନନ୍ଦ ଆଉ କୃତଜ୍ଞତା ଜଣାଉଛି ।

ରବିଦତ୍ତ ତାର ସାଙ୍ଗ ମାନଙ୍କୁ ଡାକିଲା । ସେମାନେ ବହୁ କଷ୍ଟରେ ଗୁମ୍ଫା ଭିତରକୁ ଧସି ପଶିଗଲେ । ଦିଆସିଲି ମାରି ସେମାନେ ଦେଖିଲେ ଯେ ଗୁମ୍ଫା ଖୁବ୍ ବଡ଼ । ତାର ଛାତ ଓ କାନ୍ଥରେ ନାଲି ଓ କଳାରଙ୍ଗରେ ଅଙ୍କା କେତେ ଜୀବଜନ୍ତୁଙ୍କ ଛବି । ସେମାନେ ସେସବୁ ଦେଖି ଆନନ୍ଦିତ ହେଲେ । ସେମାନେ ଆଶ୍ଚର୍ଯ୍ୟରେ ପରସ୍ପର ମୁହଁକୁ ଚାହିଁଲେ ।

ପିଲାମାନେ ନିଜ ନିଜ ଘରକୁ ଫେରିଗଲେ । ସେମାନେ ପିତାମାତାଙ୍କୁ ସେମାନଙ୍କର ନୂଆ ଅନୁଭୂତି ବିଷୟରେ କହିଲେ । ଏହି ନୂଆ କଥାଟିର ସମ୍ବାଦ ବିଜୁଳି ବେଗରେ ଦେଶସାରା ଖେଳିଗଲା ।

ଦୂରଦୂରାନ୍ତରୁ ପୁରାତତ୍ତ୍ୱ ଜାଣିଥିବା ଲୋକମାନେ ସେଠାକୁ ଆସିଲେ । ସେହି ଚିତ୍ରଗୁଡ଼ିକ ଦେଖିଲେ । ସେମାନେ ସମସ୍ତେ ଏକମତ ହେଲେ ଯେ ଏହି ଚିତ୍ରଗୁଡ଼ିକୁ ୧୫ହଜାର ବର୍ଷତଳେ ପୁରାତନ ପ୍ରସ୍ତର ଯୁଗର ମନୁଷ୍ୟ ଅଙ୍କନ କରିଥିଲା ।

ସେହି ଦୂର ଅତୀତର ଲୋକମାନେ ବଣ ଜଙ୍ଗଲରେ ପଶୁପରି ରହୁଥିଲେ । ଚେରମୂଳ ଆଉ ପଶୁପକ୍ଷୀଙ୍କର କଞ୍ଚା

ମାଂସ ଖାଇ ପେଟ ପୂରାଉଥିଲେ । ହିଂସ୍ରଜନ୍ତୁଙ୍କ ଆକ୍ରମଣରୁ ନିଜକୁ ରକ୍ଷା କରିବା ସେମାନଙ୍କ ପକ୍ଷେ କଷ୍ଟକର ଥିଲା ।

ସେମାନଙ୍କ ଜୀବନ ନାନା ବିପଦ, ଦୁଃଖ କଷ୍ଟରେ ପୂରି ଉଠିଥିଲା । ସେମାନେ କଥା କହି ଜାଣି ନ ଥିଲେ । ଠାରଠୁରି, ଗର୍ଜନ ଆଉ ପାଟିତୁଣ୍ଡ ଦ୍ୱାରା ନିଜ ନିଜର ଭାବ ପ୍ରକାଶ କରୁଥିଲେ ।

ଏହି ଠାରଠୁରି ଓ ପାଟିତୁଣ୍ଡ ଗୋଟିଏ ଦିନ ମଣିଷଙ୍କ ଭିତରେ ଜଣାଶୁଣା ହେଲା । ସେ ସବୁର ଅର୍ଥ ସେମାନେ ଜାଣିଲେ । ଏଇଠାରୁ ଏବେ ସୁଦ୍ଧା ଆମର ଦୈନନ୍ଦିନ କଥା-ବାର୍ତ୍ତାର ଅଙ୍ଗ ହୋଇଯାଇଛି ।

ଏଇସବୁ ଠାରଠୁରି ମଣିଷର ଭାବ ପ୍ରକାଶ ପାଇଁ ଯଥେଷ୍ଟ ହୋଇନଥିଲା । ତେଣୁ ମଣିଷ ସେଇ ପୁରାକାଳରେ ମଧ୍ୟ ଚିତ୍ର ଆଙ୍କି ନିଜର ମନୋଭାବ ପ୍ରକାଶ କରିବା ଆରମ୍ଭ କଲା । ଏହାହିଁ ଥିଲା ମଣିଷର ବିରାଟ ଅବଦାନ ।

ମଣିଷ ନିଜ ମନର ଭାବ ଓ ଅନୁଭୂତିକୁ ଅନ୍ୟ ପାଖରେ ପ୍ରକାଶ କରିପାରିଛି । ତାକୁ ଗୋଟିଏ ସ୍ଥାୟୀ ରୂପ ଦେବା ଏହା ଦ୍ୱାରା ସମ୍ଭବ ହେଲା । ଯୋଗାଯୋଗ କ୍ଷେତ୍ରରେ ଚିତ୍ରାଙ୍କନ ହେଲା ବଡ଼ ସହାୟକ ।

ଏହି ସବୁ ସରଳ ଛବି ହିଁ ହେଲା ଭାଷାର ପହିଲି ପାହାଚ । ଅକ୍ଷରର ହେଲା ଆଦି ରୂପ । ଯେଉଁ ଠାରଠୁରି ଓ

ଗର୍ଜନ ତର୍ଜନ ମଧ୍ୟରେ ସେମାନେ ମନୋଭାବ ପ୍ରକାଶ କରୁଥିଲେ, ତାହା ଶୀଘ୍ର ଭୁଲି ହୋଇ ଯାଉଥିଲା ।

ଜୀବନ ଥିଲା ଏକ କଠିନ ଲଢ଼େଇ । ତା ଭିତରେ ସେଇଠାରୁ ସବୁ ସ୍ଥାୟୀ ରୂପ ନେଇ ପାରୁ ନଥିଲା । ସେମାନେ ବୁଝିଲେ ଯେ ସେମାନଙ୍କର ଅଭିଜ୍ଞତାମାନ ଖୁବ ଦରକାର । ଭବିଷ୍ୟତରେ କେବଳ ନିଜ ପାଇଁ ନୁହେଁ, ନିଜର ଲୋକ, ନିଜର ପିଲାମାନଙ୍କ ସୁବିଧା ପାଇଁ ନିତାନ୍ତ ଦରକାର ।

ଗୋଟିଏ ହରିଣ କି ବାରହାକୁ କିପରି ଶିକାର କରିବାକୁ ହେବ ? ଗୋଟିଏ ସିଂହ ବା ବାଘ ସାଥିରେ କିପରି



ସଫଳତାର ସହିତ ଲଢ଼େଇ କରିବାକୁ ହେବ ? ଏ ସବୁ ଅତୀତର ଅନୁଭୂତ ଉପରେ ନିର୍ଭର କରେ । ଏହି

ଅନୁଭୂତି ଗୁଡ଼ିକୁ ସ୍ଥାୟୀ ଭାବରେ ଲେଖି ରଖିବାକୁ ସେହି ଆଦମ ମଣିଷ ଇଚ୍ଛା କଲା ।

ତେଣୁ ନିଜର ଅବସର ସମୟରେ ଗଛ ଚୋପା ଉପରେ ଆଙ୍କିଲା । ଚଟକା ପଥର ବା ଗୁମ୍ଫା ଛାତରେ ଚିତ୍ରକଲା କାନ୍ଥରେ ବାଡ଼ରେ ନିଜର ଅନୁଭୂତିକୁ ଫୁଟାଇଲା ।

ଏହି ଚିତ୍ର ବା ଛବିମାନ ସେଇ କାଳର ଲୋକଙ୍କ ପାଇଁ ଦରକାରୀ ହେଲା । ପରବର୍ତ୍ତୀ କାଳର ମଣିଷଙ୍କ ନିମନ୍ତେ ସହାୟକ ହେଲା । ଏହା ଫଳରେ ମଣିଷର ଗୋଟିଏ ଅତି ଉପକାରୀ ଶକ୍ତି ତେଇଁ ଉଠିଲା । ଏହି ଶକ୍ତି ତାକୁ ତାର ଭବିଷ୍ୟତ ଭାଷା ଓ କଳାର ଜନ୍ମ ଆଉ ବିକାଶ ଦିଗରେ ସାହାଯ୍ୟ କଲା । ଏଇ ପହିଲି ଛବି ଗୁଡ଼ିକ ତାର ନୂଆ ଭାଷା ଆଉ ନୂଆ ଶୈଳୀର ମୂଳଦୁଆ ପକାଇଲା ।

ପ୍ରାଚୀନ ପ୍ରସ୍ତର ଯୁଗ ଆସିଲା । ତାପରେ ଆସିଲା ନୂତନ ପ୍ରସ୍ତର ଯୁଗ । ବ୍ରୋଞ୍ଜ ଯୁଗ ଆସିଲା ଓ ଗଲା । ସେତେବେଳେ ମଣିଷ କିପରି ଚଳୁଥିଲା, କ'ଣ କରୁଥିଲା, ଆଉ ଆଉ କେଉଁ ଭାଷା ବ୍ୟବହାର କରୁଥିଲା ଜାଣିବା କଷ୍ଟକର ।

ପୁରା ତତ୍ତ୍ୱବିଦମାନେ ସେ ସମୟରେ କେତେକ ହାତ ହତିଆର, ବାସନ କୁସନ ପାଇ ପାରିଛନ୍ତି । ସେଗୁଡ଼ିକ ହାଡ଼, ପଥର ବା ଧାତୁରେ ତିଆରି ହୋଇଥିଲା । ତା ଦେହରେ ଟିକି ଟିକି ଛବି ଅଙ୍କିତ ହୋଇଛି । ସେଗୁଡ଼ିକ ସେତେବେଳେ ମଣିଷ ବ୍ୟବହାର କରୁଥିବା ଜିନିଷ ଗୁଡ଼ିକର ପ୍ରତିଛବି ।

ହୁଏ ତ ସେଥିରୁ କେତେକ ଜିନିଷ ଏବେ ଆଉ ବ୍ୟବହୃତ ହେଉନାହିଁ । କିନ୍ତୁ ସେତେବେଳେ ଯେଉଁ ମଣିଷ ଏମିତ ଚିତ୍ର ଆଙ୍କୁଥିଲା, ତାକୁ ସେଗୁଡ଼ିକ ବୁଝିବାରେ ଅସୁବିଧା ହେଉ ନଥିଲା ।

ଆମେ ଯେମିତ ଏବେ ଅକ୍ଷର ବା ଭାଷା ସାହାଯ୍ୟରେ ନିଜର ମନୋଭାବ ପ୍ରକାଶ କରିପାରୁଛୁ । ସେତେବେଳର ମଣିଷ ଏଇ ଚିତ୍ର ଗୁଡ଼ିକ ସାହାଯ୍ୟରେ ନିଜର ଧାରଣାମାନ ବାହାରେ ଫୁଟାଇ ପାରୁଥିଲା । ଏଥି ଭିତରେ ହଜାର ହଜାର ବର୍ଷ ବିତିଯାଇଥିଲେ ମଧ୍ୟ ପୃଥିବୀର କେତୋଟି ଦେଶର ଲୋକମାନେ ଏବେ ବି ସେହିପରି ଚିତ୍ରଗୁଡ଼ିକୁ ଧରି ରଖିଛନ୍ତି । ନିଜର ଅକ୍ଷର ବା ଭାଷା ଭାବରେ ସେସବୁ ବ୍ୟବହାର କରୁଛନ୍ତି । ଆମେରିକାର ଲୋହିତ ଭାରତୀୟ, ଦକ୍ଷିଣ ଆଫ୍ରିକାର ବୁସ୍‌ମେନ୍ ଆଉ ଉତ୍ତର ମେରୁର ଏସ୍କିମୋ-ମାନେ ଛୋଟ ଛୋଟ ଚିତ୍ର କରିଆରେ ନିଜର ମନୋଭାବ ଲେଖି ରଖିଥାନ୍ତି ।

ସତରେ ଯେ ଯେଉଁ ଭାଷା କହନ୍ତୁ ନା କାହିଁକି, ଚିତ୍ର ଗୁଡ଼ିକୁ ବୁଝିବାରେ ବେଶୀ କିଛି ଅସୁବିଧା ହୁଏ ନାହିଁ । ସେଥିପାଇଁ ଛବି ବା ଚିତ୍ର ସବୁ ସାରା ଦୁନିଆର ସାଧାରଣ ଭାଷା । ତା ହେଲା ଆଦି ମଣିଷର ପହିଲି ଭାଷା । ଯୋଗା-ଯୋଗର ତାହା ହେଲା ପହିଲି ପାହାଚ ।



# ଚିତ୍ରଲେଖା ମଧ୍ୟରୁ ଭାଷାର ଜନ୍ମ

୧୯୦୧ ମସିହା ଲର୍ଡ଼ କର୍ଜନ ଭାରତର ବଡ଼ ଲାଟ । ସେ ଜନ୍ ମାର୍ଶାଲ ନାମକ ଜଣେ ଯୁବକଙ୍କୁ ଭାରତର ପୁରୁଣା ଜିନିଷ ପତ୍ର ଆଦିର ଗବେଷଣାର ସଭାପତି କରି ଦେଲେ । ଜନ୍ ଭାରତର ଲୁଚିଛପି ଯାଇଥିବା ଅତୀତର ଗୌରବକୁ ବାହାର କରିବାରେ ଲାଗି ଗଲେ ।

ଥରେ ସେ ସିନ୍ଧୁ ନଦୀର ଉପତ୍ୟକାରେ ଏକ ପ୍ରାଚୀନ ସଭ୍ୟତାର ସନ୍ଧାନ ପାଇଲେ । ସେଠାରେ ଖୋଳାଗଲା । ହରପ୍ପା ଓ ମହେଞ୍ଜୋଦାରୋ ନାମକ ଦୁଇଟି ସହରର ଭଙ୍ଗା ଅଂଶ ସବୁ ମିଳିଲା । ସେଠାରୁ ମିଳିଥିବା ପଦାର୍ଥଗୁଡ଼ିକ ମଧ୍ୟରେ ଥିଲା କେତେକ ସିଲ୍ । ସେହି ସିଲ୍‌ରେ ଥିଲା କେତେକ ସୁନ୍ଦର ଚିତ୍ର ।

ସେଇ ଚିତ୍ରକୁ ନେଇ କିଛି ଭାବ ପ୍ରକାଶ ପାଇଥିଲା । ଆମେ ଆଜିକାଲି ସିଲ୍ ବା ମୁଦ୍ରାରେ କିଛି ଛାପିଲା ଭଳି, ସିନ୍ଧୁ ଉପତ୍ୟକାର ଦ୍ରାବିଡ଼ମାନେ ସେମାନଙ୍କ ସିଲ୍‌ରେ

କିଛି ଚିତ୍ର ଲେଖୁଥିଲେ । ଏଇ ପ୍ରକାର ଚିତ୍ରଲେଖା ପାଞ୍ଚ ହଜାର ବର୍ଷ ତଳର କଥା ।



ପ୍ରାଚୀନ ଚୀନରେ ମଧ୍ୟ ଏକ ପ୍ରକାର ଚିତ୍ର ଲେଖାର ଜନ୍ମ ଓ ପ୍ରଚଳନ ହୋଇଥିଲା । ପ୍ରାୟ ଚାରିହଜାର ବର୍ଷତଳେ ସ୍ୟାଙ୍ଗ ବଂଶର ଲୋକମାନେ ଏମିତି ଚିତ୍ରଲେଖା ବ୍ୟବହାର କରୁଥିଲେ । ଚିତ୍ର ଅଙ୍କି ନିଜର ମନୋଭାବ ପ୍ରକାଶ କରୁଥିଲେ । ଗୋଟିଏ ଚିତ୍ର ଗୋଟିଏ ଧାରଣା ବା ଭାବକୁ ବୁଝାଉଥିଲା ।

ହଜାର ହଜାର ବର୍ଷ ପରେ ମଧ୍ୟ ଚୀନ ଭାଷାରେ ଏହି ଚିତ୍ର ଲେଖା ହିଁ ସବୁଠାରୁ ଅଧିକ । ତଳେ ସେଇ ଚୀନା ଭାଷାର କେତୋଟି ଚିତ୍ରଲେଖାର ଉଦାହରଣ ଦିଆଗଲା ।

ଗୋଟିଏ ଗଛ ସୂଚାଉଥିବା ଚିତ୍ରଲେଖାଟି ହେଲା । ସେମିତି ବହୁ ଗଛ ଥାଇ ଗୋଟିଏ ବଣର ଚିତ୍ର ଲେଖା ହେଲା । ପାହାଡ଼ ଗୋଟିଏ କହିବାକୁ ଯେଉଁ ଚିତ୍ରଟି

ଆଙ୍କିବାକୁ ପଡ଼ିଲା । ତାହା ହେଲା ସୂର୍ଯ୍ୟ ବୁଝାଉଥିବା ଚିହ୍ନଟି ହେଲା କମ୍ବା ପୂର୍ବ ଦିଗକୁ ବା ଗୋଟିଏ ଗଛ ପଛରେ ସୂର୍ଯ୍ୟୋଦୟର ଚିହ୍ନ ଅଙ୍କନ ଦ୍ୱାରା ପ୍ରକାଶ କରାଯାଏ ।

ଏଇ କେତୋଟି ଚିହ୍ନ ଲେଖାରେ ଗୋଟିଏ ସାଧାରଣ କଥା ହେଲା—ଗୋଟିଏ ସରଳ ରେଖା । ସମ୍ଭବତଃ ପ୍ରାଚୀନ କାଳରେ ମନୁଷ୍ୟର ବିଶ୍ୱାସ ଥିଲା ଯେ ପୃଥିବୀ ଚଟକା । ଏଇ ଧାରଣା ଅନୁସାରେ ସରଳ ରେଖାଟିଏ ଥିଲା ପୃଥିବୀର ପ୍ରତୀକ ।

ଏମିତ ଚିହ୍ନଲେଖା ପ୍ରାଚୀନ ମିଶର ଦେଶରେ ମଧ୍ୟ ଚଳୁଥିଲା । ଭାରତରେ ଯେତେବେଳେ ଦ୍ରାବିଡ଼ମାନେ ଚିହ୍ନଲେଖା କରିଆରେ ମନୋଭାବ ଫୁଟାଇଥିଲେ, ମିଶର ଆଉ ଚୀନ ଦେଶର ଲୋକମାନେ ଠିକ୍ ସେତିକିବେଳେ ଚିହ୍ନାଙ୍କନକୁ ନିଜର ଭାଷା ପରି ବ୍ୟବହାର କରୁଥିଲେ ।

ଆଜିର ଇରାନ, ଇରାକ୍ ପ୍ରଭୃତି ଦେଶଗୁଡ଼ିକୁ ନେଇ ଗଢ଼ି ଉଠିଥିଲା ମେସୋପୋଟାମିଆ ସଭ୍ୟତା । ଏଠାରେ ମଧ୍ୟ ଏକ ଚିହ୍ନଲେଖା ବ୍ୟବହୃତ ହେଉଥିଲା । କାଦୁଅରେ ଗଢ଼ା ଫଳକରେ ବିଭିନ୍ନ ଆକାର ପ୍ରକାରର ଚିହ୍ନ ଆଙ୍କି ଶୁଖାଇ ଦିଆଯାଉଥିଲା । କେତେକ ଦେଶର ଯାଦୁଘରେ ଏହି ଫଳକ ରଖା ଯାଇଛି । ଏଥିରୁ ସେତେବେଳର ଲୋକମାନଙ୍କ ସଂପର୍କରେ ଅନେକ କଥା ଜାଣି ହେଉଛି ।

କାଳକ୍ରମେ ଚିହ୍ନଗୁଡ଼ିକ କେତେକ ନିର୍ଦ୍ଦିଷ୍ଟ ଚିହ୍ନ ଓ ଆକାରର ରୂପ ନେଇଛି । ଏହି ଚିହ୍ନ ଓ ଆକାର ନିର୍ଦ୍ଦିଷ୍ଟ

ଧାରଣାକୁ ଫୁଟାଇଲା । ବହୁତ ବ୍ୟବହାର ଫଳରେ ଚିହ୍ନ ଲେଖାଗୁଡ଼ିକ ନିର୍ଦ୍ଦିଷ୍ଟ ଭାବ ପ୍ରକାଶ କରିବାକୁ ସକ୍ଷମ ହେଲା । କଥିତ ଭାଷା ସହିତ ଏହାର ଏକ ସମତା ରକ୍ଷା ହେଲା । ଗୋଟିଏ ଚିହ୍ନ ଗୋଟିଏ ଶବ୍ଦ ଓ ପରେ ଗୋଟିଏ ଅକ୍ଷରକୁ ଫୁଟାଇଲା ।



ମିଶର ଦେଶର ହଜାର ହଜାର ବର୍ଷ ତଳେ ଆଜିର ଚୀନା ଭାଷା ପରି ଉପରୁ ତଳକୁ ଏକ ପ୍ରକାର ଚିତ୍ରଲେଖା ବ୍ୟବହୃତ ହେଉଥିଲା । ଏହି ସ୍ମୃତି ଫଳକରୁ ସହଜରେ ଜାଣି ହେବ ଯେ ଏହା କେତେ ଗୁଡ଼ିଏ ଚିତ୍ରର ସମଷ୍ଟି । ମିଶରର ରାଣୀ କ୍ଲିଓପାଟ୍ରାଙ୍କ ନାମଟି ଲେଖିବାକୁ ଏହି ସ୍ମୃତି ଫଳକରେ ନଅଟି ଚିତ୍ର ବ୍ୟବହୃତ ହୋଇଛି ।

ମିଶରର ଏଇ ଚିତ୍ରଲେଖା ସ୍ୱର ଅନୁସାରେ ଗଠିତ । ମାତ୍ର ଗୋଟିଏ ଗୋଟିଏ ସ୍ୱର ପାଇଁ ବହୁ ସଂଖ୍ୟକ ଚିହ୍ନ ବ୍ୟବହୃତ ହେଉଥିଲା । ଯଥା—'ଅ' ସ୍ୱର ପାଇଁ ସେଇ ଭାଷାର ୨୦ଟି ଚିହ୍ନ ଓ 'ହ' ପାଇଁ ୩୦ଟି ଚିହ୍ନ ରହିଥିଲା ।

ତେଣୁ ସେଥିରେ ଭାବ ପ୍ରକାଶ କରୁଥିବା ସମସ୍ତ ସ୍ୱର ପ୍ରକାଶ କରିବାକୁ ମୋଟ ତିନି ଚାରି ଶହ ଚିହ୍ନର ବ୍ୟବହାର ହେଉଥିଲା । ତେଣୁ ଏହି ଭାଷା ଖୁବ୍ ଜଟିଳ ହୋଇ ପଡ଼ିଥିଲା ।

ମାତ୍ର ଏହି ଜଟିଳତା ଭିତରୁ ଭାଷାର ସରଳତା ଆସିଥିଲା । ଏହି ଅଡ଼ୁଆ ସୂତାରୁ ଅକ୍ଷରର ଖିଅ ମିଳିଥିଲା । ଏହିପରି ତ ମଣିଷ ଆଗେଇଛି । ତାର ଯୋଗାଯୋଗରେ ଉନ୍ନତ ହୋଇ ଚାଲିଛି ।



## ଚିତ୍ରରେଖାରୁ ଆସିଲା ଅକ୍ଷରଲେଖା

ଚାରି ହଜାର ବର୍ଷ ତଳର କଥା ଭାରତରେ ଆର୍ଯ୍ୟମାନେ ବାସ କରୁଥିଲେ । ସଂସ୍କୃତ ଥିଲା ସେମାନଙ୍କର ମାତୃଭାଷା । ସେଇ ଭାଷାରେ ସେମାନେ ବେଦ ରଚନା କରିଥିଲେ । କିନ୍ତୁ ତାହା ଲେଖା ଯାଉ ନଥିଲା ।

ପୁରୁଷ ପରେ ପୁରୁଷ ଶୁଣି ଶୁଣି ବେଦକୁ ମନେ ରଖୁଥିଲେ । ତେଣୁ ତାକୁ "ଶ୍ରୁତି" କୁହା ଯାଉଥିଲା ।



ବେଦକୁ ଲେଖି ରଖିଲେ ଅଶୁଦ୍ଧ ହୋଇ ଯିବ ବୋଲି ସେମାନେ ଭାବୁଥିଲେ ।

ଦୁଇ ହଜାର ବର୍ଷତଳେ ଲେଖା ପ୍ରଣାଳୀ ଭାରତରେ ପ୍ରଚଳିତ ଥିଲା । ହେଲେ ବେଦ ଲେଖାଯାଇ ନଥିଲା । ଆର୍ଯ୍ୟ ଋଷିମାନଙ୍କର ବି ପ୍ରଖର ସ୍ମୃତି ଶକ୍ତି ଥିଲା । ହଜାର ହଜାର ବର୍ଷ ଧରି ବେଦ ଖାଲି ଲୋକଙ୍କ ମୁଖରେ ବଂଚି ରହିଥିଲା ।

ସଂସ୍କୃତ ଅଧିକାଂଶ ଭାରତୀୟ ଭାଷାର ମାଆ । ଏହା ମଧ୍ୟ ବହୁ ୟୁରୋପୀୟ ଭାଷାର ମାଉସୀ । ଭାରତର ଏହି ସଂସ୍କୃତ ଭାଷା ଓ ଅକ୍ଷର ଖୁବ୍ ବିଜ୍ଞାନ ସମ୍ମତ । ଏହା ପୃଥିବୀକୁ ଭାରତର ଶ୍ରେଷ୍ଠ ଅବଦାନ ବୋଲି କୁହାଯାଏ ।

ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ ସିନ୍ଧୁ ଉପତ୍ୟକାର ଦ୍ରାବିଡ଼ମାନେ ଲିପିର ବ୍ୟବହାର ଜାଣିଥିଲେ । କିନ୍ତୁ ଦୁର୍ଭାଗ୍ୟକୁ ସେଇ ସଭ୍ୟତାର ପତନଠାରୁ ଆଜିଯାଏ ଭାରତର କୌଣସି ଲିଖିତ ପଦାର୍ଥ ମିଳି ନାହିଁ । ଅବଶ୍ୟ ପ୍ରାୟ ଅଢ଼େଇ ହଜାର ବର୍ଷ ତଳେ ପାଲି ଭାଷାରେ ବୌଦ୍ଧ ଓ ସୂତ୍ର ସାହିତ୍ୟରେ ଲେଖା ଯାଇଥିଲା ।

ଅଶୋକଙ୍କ ଶିଳାଲିପି ଭାରତର ସବୁଠୁଁ ପ୍ରାଚୀନ ଲେଖା । ଦୁଇ ପ୍ରକାର ଲିପିରେ ତାଙ୍କ ଶିଳାଲିପି ଗୁଡ଼ିକ ଲେଖା ଯାଇଥିଲା । ବହୁ ବର୍ଷ ଧରି ଏହି ଲିପି ଗୁଡ଼ିକର ଉନ୍ନତି ହେଲା । ଅଶୋକଙ୍କ ଶିଳାଲିପିରେ ବ୍ୟବହୃତ ଦୁଇ ପ୍ରକାର ଲିପି ମଧ୍ୟରେ ବ୍ରାହ୍ମୀ ଲିପି ପ୍ରଧାନ । ଏହାକୁ ବହୁ

ଭାରତୀୟ ଭାଷାର ମାଆ ବୋଲି କୁହାଯାଏ । ବହୁ ପଣ୍ଡିତଙ୍କ ମତରେ ଭାରତରୁ ହିଁ ଦକ୍ଷିଣ-ପୂର୍ବ ଏସିଆର ଲୋକମାନେ ଲିଖନ ପ୍ରଣାଳୀ ଶିକ୍ଷା କରିଥିଲେ ।

ଏହି ଶତାବ୍ଦୀର ଆରମ୍ଭରେ ଐତିହାସିକ ମାନେ କ୍ରେଟ୍ ଦ୍ୱୀପରେ ଗୋଟିଏ ସ୍ଥାନ ଖୋଳି ଥିଲେ । ସେଠାରେ ସେମାନେ କେତେ ମୃତ୍ତିକା ଫଳକ ପାଇଥିଲେ । ସେଥିରେ ଲେଖା ହୋଇଥିବା ଭାଷା ପ୍ରାଚୀନ କ୍ରେଟର କୌଣସି ଏକ ଅଜଣା ଭାଷା ବୋଲି ସମସ୍ତେ ଭାବିଥିଲେ । କିନ୍ତୁ ସେମାନେ ଗ୍ରୀସ୍‌ରେ ସେହିପରି ଭାଷାରେ ଲିଖିତ ମୃତ୍ତିକା ଫଳକ ମଧ୍ୟ ଦେଖିବାକୁ ପାଇଥିଲେ । ସେମାନେ ଭାବିଥିଲେ ଯେ ସମ୍ଭବତଃ କେବେ ଗ୍ରୀସ୍‌କୁ କ୍ରେଟର ଲୋକମାନେ ଶାସନ କରୁଥିଲେ ଏବଂ ସେମାନେ ସେମାନଙ୍କ ଭାଷାରେ ଏହି ଫଳକ ଲେଖୁଥିଲେ । ଦୀର୍ଘ ୫୦ ବର୍ଷ ଧରି ଏହି ଫଳକ ଗୁଡ଼ିକରୁ କିଛି ବୁଝି ହେଉ ନଥିଲା । ପ୍ରାଚୀନ ଭାଷା ଗୁଡ଼ିକରେ ଜଣେ ପଣ୍ଡିତ ୧୯୫୩ ମସିହାରେ ଏହି ଫଳକକୁ ପାଠ କରି ସେଥିରୁ ଅର୍ଥ ବାହାର କରିଥିଲେ । ସେ କହିଥିଲେ ଯେ ଏଥିରେ ବ୍ୟବହୃତ ଲିପି କ୍ରେଟ ଭାଷାର ନୁହେଁ । ଏହା ପ୍ରାଚୀନ ଗ୍ରୀକ ଭାଷାର ଲିପି ।

ଇଂରେଜରେ ଅକ୍ଷରକୁ ଆଲଫାବେଟ କୁହାଯାଏ । ଏହା ଦୁଇଟି ପ୍ରାଚୀନ ଗ୍ରୀସ ଭାଷାର ଅକ୍ଷର "ଆଲଫା" ଓ "ବେଟା"କୁ ନେଇ ଗଠିତ । ପଣ୍ଡିତମାନେ ମତ ଦିଅନ୍ତି ଯେ

ଗ୍ରୀକ୍‌ମାନେ ପ୍ରାଚୀନ ଫୋନେସିୟାନ ମାନଙ୍କ ଠାରୁ ସେମାନଙ୍କ ଅକ୍ଷର ଶିଖିଥିଲେ ।

ଫୋନେସିୟାନମାନେ ଗୋଟିଏ ପ୍ରସିଦ୍ଧ ବ୍ୟବସାୟୀ ଜାତିଥିଲେ । ସେମାନେ ୟୁରୋପର ବହୁ ଦେଶ ସହିତ ବଣିଜ ବେପାର କରୁଥିଲେ । ସେମାନଙ୍କର ଲିଖନ ପ୍ରଣାଳୀକୁ ମଧ୍ୟ ସେ ସବୁ ଦେଶର ଲୋକମାନେ ଅନୁକରଣ କରିଥିଲେ । ଏହି ପ୍ରକାରେ ଗ୍ରୀସ ଓ ରୋମ୍‌ର ଲୋକମାନେ ଫୋନେସିୟାନମାନଙ୍କ ଅକ୍ଷର ଶିକ୍ଷା କରିଥିଲେ । ସେଥିରେ ଉନ୍ନତି ବି କରିଥିଲେ ।

ଆଫ୍ରିକା ଓ ଏସିଆର ସଭ୍ୟ ଲୋକମାନଙ୍କ ସହିତ ମଧ୍ୟ ଏହି ଫୋନେସିୟାନମାନଙ୍କ ସମ୍ପର୍କ ଥିଲା । ସେମାନଙ୍କ ଭାଷା ସହିତ ଅଶୋକଙ୍କ ଶିଳାଲିପିରେ ବ୍ୟବହୃତ ବ୍ରାହ୍ମୀ ଭାଷାର ସମ୍ବନ୍ଧ ରହିଛି ।

ଫୋନେସିୟାନମାନଙ୍କ ଶିଳା ଲିପି ଥିଲା । ସେଥିରୁ ସେମାନଙ୍କର ଅକ୍ଷରସବୁ ଉନ୍ନତ ଅବସ୍ଥାକୁ ଆସିଥିବା ଜଣାଯାଏ । ୧୯୨୩ ମସିହାରେ ଜଣେ ଫରାସୀ ପଣ୍ଡିତ ପ୍ରଥମଥର ପାଇଁ ଗୋଟିଏ ଫୋନେସିୟାନ ଶିଳାଲିପି ପାଇଥିଲେ । ତାହା ଅହିରାମ ନାମକ ଜଣେ ଫୋନେ-ସିୟାନ୍ ରଜାଙ୍କର କବର ଭିତରୁ ବାହାରିଥିଲା ।

ପଣ୍ଡିତମାନେ ସ୍ଥିର କରିଛନ୍ତି ଯେ ଏହି ଶିଳାଲିପି ଖ୍ରୀଷ୍ଟପୂର୍ବ ତ୍ରୟୋଦଶ ଶତାବ୍ଦୀରେ ଲେଖା ଯାଇଥିଲା ।

ସେହି ଶିଳାଲିପିରେ ଲେଖିଥିଲେ, ଯେ କୌଣସି ଲୋକ ଏଥିରେ ଲାଗିବ ନାହିଁ । ସେ ଏହା ଅଜିବ ଭଙ୍ଗୀ ଭାଷାପର ଡାହାଣରୁ ବାମକୁ ଲେଖା ହୋଇଥିଲା ।

ଏମିତି ଚିତ୍ରଲେଖା ବଦଳରେ ଅକ୍ଷର ଲେଖା ଆସିଲା । ଅତୀତର ଜଟିଳ ରେଖା ଚିତ୍ରର କୁହୁଡ଼ି ଘୁଞ୍ଚିଗଲା । ଅକ୍ଷର ଗୁଡ଼ିକ ଯୋଗୁଁ ମଣିଷର ଭାବ ପ୍ରକାଶ ସହଜ ଓ ସରଳ ହେଲା । ଏବେ ଆମେ କେତେ ସୁବିଧାରେ ଅକ୍ଷର ଗୁଡ଼ିକୁ ନେଇ ଆମ ମନର ଭାବ ପ୍ରକାଶ କରି ପାରୁଛୁଁ । କିନ୍ତୁ ଯୁଗ ଯୁଗ ଧରି ମନୁଷ୍ୟ ସେଗୁଡ଼ିକର ଉନ୍ନତି କରି ଚାଲିଛି । ତାହା ହଜାର ହଜାର ବର୍ଷର ଫଳ । ହେଲେ ଆଜି ତାକୁ କେତୋଟି ମାସ ଭିତରେ ପାଞ୍ଚ ଛଅ ବର୍ଷର ଶିଶୁ ଆୟତ୍ତ କରି ପାରୁଛି । ଆମେ ସତେ ଆଜି କେତେ ଭାଗ୍ୟବାନ ।

